ଶ୍ରୀ ଭକ୍ତାସ୍ମଚରଣ ଦାସ କବିରତ୍ନ ରଚିତ

# ନୀଶାବର୍ଦ୍ଧିନୀ

## ଚୌପଦୀ

ଶ୍ରୀ ଜଗନ୍ନାଥ ସିଂହଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।



ପ୍ରାପ୍ତିସ୍ଥାନ :—

ଜଗନ୍ନାଥ କୋମ୍ପାନୀ

ବାଲୁବଜାର, କଟକ ।

ପୋ: ଅ: ଶୃଦଜୀବୋକ,

ମୂଲ୍ୟ ୦ ◦ / ଏକଅଣା ମାତ୍ର ।

# ନିଶାବର୍ଦ୍ଧିନୀ ଚୌପଦୀ

ପଣ୍ଡିତଜନେ ଶୁଣିବ ଦେଇ ମନ କର୍ଣ୍ଣ ।
ନିଶାବର୍ଦ୍ଧିନୀ ଗୀତ ମୁଁ କରିବି ଗାୟନ । ୧ ।
ଯଦ୍ୟା ମଧ୍ୟେ ନିଶା ବୋଲି ରାତ୍ରକୁ ସେ କହି ।
ଚତୁର୍ଥ ପ୍ରହରେ ସେହୁ ସମାପ୍ତ ହୁଅଇ । ୨ ।
ସେହିପରି ଏହି ଗୀତ ଗୋଟିକ ହୋଇବ ।
କବି ପରିଶ୍ରମ ଏଥିମଧ୍ୟେ ରହିଥିବ । ୩ ।
ନିଶାବର୍ଦ୍ଧିନୀର ଏହୁ ଅଟଇ ସାଙ୍ଗ ଗୀତ ।
ମୂର୍ଖମାନଙ୍କୁ ଏ ବିଷ ପଣ୍ଡିତଙ୍କୁ ହିତ । ୪ ।
ପ୍ରଥମ ପଦରେ ଶୃଙ୍ଗାରଗୋଟି ଅର୍ଥ ଥିବ ।
ଦ୍ୱିତୀୟେ ଅଠ ତୃତୀୟେ ବାର ଅର୍ଥ ହେବ । ୫ ।
ଚତୁର୍ଥ ପଦରେ ହୋଇଥିବ ଷୋଳ ଅର୍ଥ ।
ଶୁଣିବ ପଣ୍ଡିତମାନେ ସ୍ଥିର କରି ଚିତ୍ତ । ୬ ।
ଗୀତମାନଙ୍କ ମଧ୍ୟରେ ଏ ଅଟଇ ସାର ।
ଗ ଯୁକ୍ତ କଣ୍ଠଭୂଷଣ ନାମ ଅଟେ ଯାର । ୭ ।
ଏପରି ଗୀତ ସଭାରେ ବ ପଢ଼ିବ ଯେବେ ।
ପଣ୍ଡିତ ମଧ୍ୟେ ପ୍ରଶଂସା ଲଭିବ କ ତେବେ । ୮ ।
ଏଣିକି ଗୀତ ପ୍ରକାଶ କରୁଅଛୁ ମୁହିଁ ।
ଶୁଣିବ ପଣ୍ଡିତମାନେ ଏକମନ ହୋଇ । ୯ ।

---

## ଶ୍ଳୋକ

ନଗାବର୍ଦ୍ଧନୀ ଗୀତସ୍ୟ ଚତୁର୍ଥୋ ମଣ୍ଡମାଚରେତ୍ ।
ଦ୍ୱାଦଶୋ ଷଟ୍‌ଦଶୋ ଚୈବ ଯୁକ୍ତମସ୍ୟ କ୍ରମାନ୍ୱୟୁ । ୦ ।

## ଗୀତ

ଶ୍ରବଣକର ସୁମନେ ହେ । ଜନେ ।
ଗୃହ ଅଠ ବାର ଷୋଳ ଅର୍ଥ ସାର ଗୃହ ପଦରେ ଯତନେ ହେ । ପଦ ।

## ଅର୍ଥ

ହେ ଜନମାନେ ସୁମନେ କି ଉତ୍ତମ ମନେ ଏ ଗୀତକୁ ଶ୍ରବଣ କର । ଏଥିରେ କ୍ରମାନ୍ୱୟେ ଗୃହ, ଅଠ, ବାର, ଷୋଳ ଅର୍ଥ ପ୍ରକାଶ ହେବ । ୦ ।

## ଗୀତ

ଅହ୍ନମକରରେ ମଜ୍ଜିଥାଅ ଧୀରେ ହରିଷରେ ଦର୍ପ ହନେ ।
ଘନରେ ଅଶ୍ରୁ ହୁଅ ଅଢଶୟ ତାନରେ ତ ବଣ କ୍ଷାନେ ହେ ।୧।

## ଅର୍ଥ

### ସୂର୍ଯ୍ୟଙ୍କଠାରେ

ପ୍ରଥମେ ସୂର୍ଯ୍ୟଦେବଙ୍କୁ ଭକ୍ତ ଜଣାଉଅଛନ୍ତି—ହେ ସୂର୍ଯ୍ୟଦେବ ! ଆପଣ ଅହ୍ନମକର ନାମରେ ସର୍ବଦା ମଜ୍ଜିଥାଅ । ହନରେ ଆପଣଙ୍କର ଯେ ଖର ତେଜ ତାହାର ଏପରି ଦର୍ପ ଯେ ହର ଯେ ପୁଷ୍କରଣୀରେ ସ୍ନାନ କଲେ ସେ ହରଣ ହୁଏ । ଆପଣ ଘନ ତାନରେ ଅର୍ଥାତ୍ ଅଢଶୟ କୋଳାହଳ ଶବ୍ଦରେ ପୂର୍ଣ୍ଣ ହୋଇଥାଅ । ଲୋକେ କର୍ଣ୍ଣରେ ତାହା ଶୁଣନ୍ତି । ୧ ।

### ପୁଷ୍କରଣୀଠାରେ

ଯେ ପୁଷ୍କରଣୀ ସେ ସର ନାମକୁ ଦର୍ପ ସହକାରେ ଧାରଣ କରିଥାଏ । ତହିଁରେ ଅହି ଯେ ଧଣ୍ଡ ସାପ, ମକର ଯେ ମଗର କୁମ୍ଭୀରମାନେ ମଜ୍ଜନ ହୋଇଥାନ୍ତି । ଖରେ ହର ଅର୍ଥାତ୍ ପୁଷ୍କରଣୀରୁ ଅଳ୍ପ ଅଳ୍ପ ପାଣି ଶୁଖିଗଲେ ଘନ ଯେ ବୃଷ୍ଟିରେ ସେ ଅଢଶୟ ଅଗାଧ୍ୱ ହୁଏ । ୨ ।

ପର୍ଯ୍ୟା—ଘନେ ମେଘେ ଘନୋସାନ୍ଦ୍ର କାଂସ୍ୟତାଳ ଧ୍ୱନିର୍ଘନଃ ।

ଘନଂ ଗୀତଂ ଘନଂ ବୃଷ୍ଟି ଘନସ୍ୟା ଲୌହ ମୁଦ୍ଗର ।

ଇତି । ଧ୍ୱନିମଞ୍ଜରୀ ।

ଏମନ୍ତ ଯେ ଘନ ବୃଷ୍ଟି ହେଲାବେଳେ କର୍ଣ୍ଣ ସ୍ତବ୍ଧ ହୋଇଯାଏ । ୨ ।

ଗ୍ରୀଷ୍ମଋତୁଠାରେ

ଯେ ଗ୍ରୀଷ୍ମଋତୁ ଅହମକର ଅର୍ଥାତ୍ ବେଶୀ ଉତ୍ତାପରେ ମଣ୍ଡନ ହୋଇଥାଏ । ସେନବେଳେ ସବୁ ଯେ ପାନ୍ଥ ପ୍ରଭୃତିରେ ସେ ତାପ ଦହନ ହୁଏ । ଅତଏବ ତାନରେ ଈ ଏତ ଉଚ୍ଚ ସ୍ୱନରେ ଘନ ଯେ ଝିଙ୍କାରି-ମାନେ ରାବ କରନ୍ତି ସେ ରାବରେ କର୍ଣ୍ଣ ସ୍ତବ୍ଧ ହୁଏ । ୩ ।

ଖଳଲୋକଠାରେ

ଯେ ଖଳଲୋକ ସେ ଅହମକର ଯେ ସର୍ବଦା ରାଗରେ ଯୁକ୍ତ ହୋଇ ଥାଏ । ହନେ ହନେ ସେ ଯେବେ ଦର୍ପ କରେ ତା ମନ ବଡ଼ ହର୍ଷ ହୁଏ । ଘନ ଯେ କନ୍ୟା ତଙ୍କାରରେ ସେ ଆଶ୍ରୟୀ ହୋଇ ଥାଏ । ଅଉ ମଧ୍ୟ ଶଯ୍ୟାଗାମୀରେ ବଶୀଭୂତ ହୋଇଥାଏ । ୪ ।

## ଗୀତ

ଶୀତରେ ତଦର ସମାନ ରୂଚର ବଗ୍ରର ବାହାର ମନେ ।

ପଲ୍ଲଶର ଯଶ ପ୍ରକାଶ ଅଶେଷ ସମ୍ପୃରେ ବଟମାନେ । ୨ ।

## ଶବ୍ଦ

ଶୀତୋବୃକ ଶୀତୋଽଗ୍ନି ଶୀତୋଦୈତ୍ୟ ପୁରୋହିତଃ ।

ଶାମ୍ୟକୋଽପି ଶୀତୋଙ୍କେସ୍ତ୍ରୀ ଶୀତୋରଜତ ଉଚ୍ୟତେ ॥

ବୃକ୍ଷ ପତ୍ର ପଲାଶସ୍ୟା ପଲାସୋରାକ୍ଷସୋମତ ।

ପଲାସୋ ହରିତୋବର୍ଣ୍ଣଃ ପଲାସୋ ଯକ୍ଷଉଚ୍ୟତେ ॥

## ଅର୍ଥ

ଶୀତକାଳଠାରେ

ଶୀତକାଳ ହେଲେ ପୃଥିବୀ ଦର ଯେ ଶଙ୍ଖ ପତ୍ର ବର୍ଣ୍ଣ ହୁଏ । କାରଣ—ଶୀତ ଦନରେ ବେଶୀ କୁହୁଡ଼ି ହୁଏ । ଶୀତରୁ କପର

ହୃଦ୍ବାଡ ପାଇବା ଲୋକମାନଙ୍କ ମନରୁ ଏହି ବିଷୟର ବାହାର ଦେଇଥାଏ । ସେ ସମୟରେ ପଲାଶ ଗଛମାନେ ଅଶେଷ ଯଶ ପ୍ରକାଶ କରନ୍ତି ଅର୍ଥାତ୍ ପୁଷ୍ପବନ୍ତ ହୁଅନ୍ତି । ସମୟରେ ବଡ ଯେ ଭଲରୂପେ ସେ ଫଳଗୁଡ଼ିକ ମନୁଥାଏ । ୧ ।

ଶୁକ୍ର ମନ୍ତ୍ରୀଠାରେ

ଶିବ ଯେ ଶୁକ୍ର ନାମ ଶୁଣିଲେ ବେଦ ବୋଲି ମନରେ ଦର ଓ ଭୟ ଜାତ ହୁଏ । କିନ୍ତୁ ଶୁକ ସେ ସମାନ ଭାବରେ ହୃଦୟ । ତା ମନରୁ ବନ୍ଧୁତ୍ଵ ବିଷୟ ବାହାର ହୁଏ । ପଣ୍ଡିତ ମେ ବ୍ରାହ୍ମଣମାନଙ୍କର ଯଶ ସେ ବର୍ଣ୍ଣନା କରୁଥାଏ । ସମୟରେ ତ ଅହଂକାରୀମାନଙ୍କ ମଧ୍ୟରେ ଥିବା ସମୟରେ ସେ ବଡ ଓ ଭଲ ଦେଖାଯାଏ । ୨ ।

ଗାୟକଠାରେ

ଶିବ ଯେ ଗାୟକ ଗାୟନ କରିବାକୁ ଦର ଯେ ମୂଲ୍ୟ ଛଣ୍ଟାଇ ତାକୁ ଅର୍ପିଲେହେଁ ତାହାରେ ସମାନ ଆଦର ଥାଏ । କେଉଁ ଗୀତ ପଢ଼ିବ ସେ ମନରୁ ବିଷୟ ବାହାର କରେ । ପଣ୍ଡିତ ସେ ଯଶ ଶ୍ରୀଧା କୃଷ୍ଣଙ୍କର ଯଶ ବର୍ଣ୍ଣନା କରେ । ଗାୟନ କଲାବେଳେ ସେ ଭଲ ଦେଖାଯାଏ । ୩ ।

ବୃଦ୍ଧ ଲୋକଠାରେ

ଶିବ ଯେ ବୃଦ୍ଧଲୋକ ତାଙ୍କୁ ସବୁବେଳେ ଦରଣ ଯେ ଅମାବାସ୍ୟା ଶୁକ୍ଳପକ୍ଷ ଦେଖାଯାଏ । ତାଙ୍କ ମନରେ ଅନ୍ୟ ବିଷୟ ରହେ ନାହିଁ । ପଣ୍ଡିତ ଯେ ଯଶ ଗୋଷ୍ଠୀ ଏ ଦେଖିଲେ ସେ ଭକ୍ତି କରନ୍ତି ଅନ୍ୟ ମଧ୍ୟ ବୃଦ୍ଧ ଲୋକମାନେ ସମୟରେ ଭଲ ଦେଖାଯାନ୍ତି । ୪ ।

ଶତ୍ରୁଠାରେ

ଶିବ ଯେ ଶତ୍ରୁ ସେ ଶତ୍ରୁଠାରେ ସମାନ ଭୟ ଦେଖାଏ । ଶତ୍ରୁକୁ ଉପର ଜାଣିବ ମନରେ ଅନେକ ବିଷୟ କରେ । ପଣ୍ଡିତ ଯେ ଯୁଦ୍ଧର ବିଷୟ ମଧ୍ୟ ଭାବନା କରେ । ଶତ୍ରୁ ସଙ୍ଗେ ଯୁଦ୍ଧ କଲାବେଳେ ବଡ଼ ଭଲ ଦେଖାଯାଏ । ୫ ।

ଶୁକ୍ଳବର୍ଣ୍ଣଠାରେ

ଶିତ ଯେ ଶୁକ୍ଳ ବର୍ଣ୍ଣ ସେ ଦର୍ପଣମାନ ତ ଦେଖିବାକୁ ସୁନ୍ଦର, ଯେଉଁ ପଲାଶ ବ ପଣ୍ଡମାନଙ୍କର ବର୍ଣ୍ଣ ଶୁକ୍ଳ ହୋଇଥାଏ ତାହାର ଯଶ ବେଶି ବର୍ଣ୍ଣନା ହୋଇଥାଏ । ସମସ୍ତରେ ଶୁକ୍ଳ ପଦାର୍ଥ ବଡ଼ ଭଲ ଦେଖାଯାଏ ॥

ରୂପାଠାରେ

ଶିତ ଯେ ରୂପା ସେ ଦର ଯେ ଧଳା ବର୍ଣ୍ଣରେ ରୁଚି ଦିଏ । ଲୋକେ ରୂପାରେ ହାର କଳବାଲୁ ବଗ୍ର କରନ୍ତି । ରୂପାରେ ସୁନ୍ଦର ଅଳଙ୍କାର କଲେ ପଲଶ ଯେ ବଣିକମାନଙ୍କର ଯଶ ଅଶେଷ ପ୍ରକାରେ ପ୍ରକାଶ ପାଏ । ରୂପାହାର ସମସ୍ତରେ ଭଲ ଦେଖାଯାଏ । ପର୍ଯ୍ୟା । ସନ୍ନଶୋ ବଣିକେ ପ୍ରୋକ୍ତା ପଲସୋ ସୂଥମ୍ୟତ୍ୟତେ । ୭ ।

ଅମୃତ ଠାରେ

ଶିତ ଯେ ଅମୃତ ସେ ଦର ଯେ ଶୁକ୍ଳବର୍ଣ୍ଣ ଥିବାରୁ ସୁନ୍ଦର ଦେଖାଯାଏ । ଅମୃତ ଭକ୍ଷଣ କଲେ ଅନେକ ସ୍ୱଗ୍ୟର ମନରୁ ବାହାରେ । ମତାନ୍ତରେ । ଅମୃତ ପନସ ଯେ ହରିତବର୍ଣ୍ଣ ଥିବାରୁ ତାହାର ଯଶ ଅନେକ ବର୍ଣ୍ଣନା ହୁଏ; ଅଜ୍ର ମଧ୍ୟ ସେ ବଡ଼ ଉପକାରୀ । ୮ ।

## ଗୀତ

ଦଣ୍ଡଧର ଘାର ନଦରେ ସ୍ୱହାର ଅଦର ବଳାଇ ଧାନେ ।
ଷନ ଷଙ୍ଗଢରେ ଭଜଥାଅ ଧୀରେ ବର ନର୍ଭୟର ମନେ । ୩ ।

ପର୍ଯ୍ୟା

କାଣ୍ଡୋ ବାଣେ ଭୁଜା ଦଣ୍ଡେ ସଂଦଣ୍ଡ କାଣ୍ଡ ଉଚ୍ୟତେ
ବଲଂ କାଣ୍ଡଞ୍ଚ ଶୂଳଞ୍ଚ ତମସ୍ତାଣ୍ଡଂ ତମସ୍ୟପି ॥
ଷନ ଦୂର୍ଣ୍ଣ ଶନଭୂର୍ୟୁ ଶନ କାର୍ଣ୍ଣ ଶନମିଁଦ ।
ଯନ ସର୍ପ ବିଶେଷଷ୍ଟଶନ କାଳ ଉଦାହୃତ ॥

## ଅର୍ଥ

ଧନୁଠାରେ

ଦଣ୍ଡ ଯେ ଶର ତାଙ୍କୁ ଧରେ ଯେ ଧନୁ ଯେ ସାରଥକ ; ସେ ନର୍ଭୟରେ ଛଦାର କରେ । ଶତ୍ରୁକୁ ବଧ କରିବାକୁ ଅଟେ ଧାନେ ବ ଅଳ୍ପ ଅଳ୍ପ

ଆଦର ବଢ଼ାଇ ଥାଏ । ଯେ ଧନ, ସେ ଶନି ଯେ କାଳ ସଙ୍ଗରେ ଧୀର ଭାବରେ ମଚ୍ଛିଥାଏ । ଯାର ପଣେ ନିର୍ଭୟ ହୋଇଥାଏ । ୧ ।

ବ୍ରହ୍ମାଠାରେ

ଯେ ବ୍ରହ୍ମ ସେ ଦଣ୍ଡଧର ନାମକୁ ଧାରଣ କରି ନିଦରେ ବିହାର କରନ୍ତି । ପୃଥିବୀରେ ଧାନ ଫସଲ କମ୍ପଇ ଭଳ ଦେବ ଲୋକଙ୍କ ଆଦର କରନ୍ତି । ଶନି ଯେ କୀର୍ତ୍ତି କଳିବା ବିଷୟରେ ଧୀର ଭାବରେ ମଚ୍ଛିଥାନ୍ତି ତାଙ୍କର ମନ ସବୁ ବିଷୟରେ ନିର୍ଭୟ । ୨ ।

ବଣିକଠାରେ

ଦଣ୍ଡ ଯେ ନାକଛ ଦଣ୍ଡ ତାଙ୍କୁ ଧରେ ଯେ ବଣିକ ସେ ଧନରେ ଆଦର ବଢ଼ାଇ ନିର୍ଭୟରେ ବିହାର କରେ । ଶନି ଯେ ଗୌର ଭାବରେ ଦ୍ୱିବର୍ଣ୍ଣ ସଙ୍ଗେ ମଚ୍ଛିଥାଏ । ୩ ।

ବଳିଷ୍ଠ ଲୋକଠାରେ

ଦଣ୍ଡଧର ଯେ ବଳିଷ୍ଠ ଲୋକ ସେ ଲୋକଙ୍କଠାରେ ଅଳ୍ପ ଆଦର ବଢ଼ାଇ ନିର୍ଭୟରେ ବିହାର କରେ । ଅଉ ଶନି ଯେ ମଦମତ୍ତ ସଙ୍ଗରେ ନିର୍ଭୟରେ ମଚ୍ଛିଥାଏ । ୪ ।

ରାଜାଠାରେ

ଯେ ରାଜା ସେ ଦଣ୍ଡଧର ନାମରେ ନିଦରେ ବିହାର କରେ ଧାନରେ ଆଦର ବଢ଼ାଇ ଅମାର ଖମାର କରେ । ଶନି ଯେ କୀର୍ତ୍ତି ପଦରେ ମଚ୍ଛି ଭୟ ହୀନ ହୋଇଥାନ୍ତି । ୫ ।

ଗ୍ରାହଠାରେ

ଯେ ଗ୍ରାହ ସେ ଦଣ୍ଡ ଯେ ଅନ୍ଧକାରକୁ ଧାରଣ କରିଥାଏ । ଧାନେ ଅଳ୍ପ ଅଳ୍ପ ନିଦରେ ଆଦର ବଢ଼ାଏ । ଶନି ଯେ କାଳ ଗ୍ରାହ କାଳ ଏହି ଭାବରେ ମଚ୍ଛିଥାଏ । ଗ୍ରାହ କାଳରେ ନିରଭୟ ଯେ ଜଳକୁ ଲୋକେ ଭୟ କରନ୍ତି । ୬ ।

ବୈଷ୍ଣବଠାରେ

ଯେ ବୈଷ୍ଣବ ସେ ଦଣ୍ଡଧର ନାମରେ ଭୟ ହୀନ ହୋଇ ବିହାର କରନ୍ତି । ଶନି ଶଙ୍ଖ ଯେ ତମ ଗୁଣରେ ଧୀର ଭାବରେ ମଚ୍ଛିଥାନ୍ତି । ତାଙ୍କ ବଳ ପାଇ ନିର୍ଭୟ ମନ କାହାର ଅଛି । ୭ ।

### ପର୍ବତ ଗୁମ୍ଫାଠାରେ

ଯେ ଗୁମ୍ଫା ସେ ଦଣ୍ଡ ଯେ ଅନ୍ଧକାର ସମୂହକୁ ନିଜରେ ବିସ୍ତାର କରାଏ ଆଉ ମଧ୍ୟ ଅଳ୍ପ ଦର ଯେ ଭୟ ଜାତ କରାଏ। ଶନି ଯେ ସର୍ପ-ମାନଙ୍କ ଦ୍ୱାରା ମଣ୍ଡି ବିଶେଷ ଭୟଙ୍କର ହୋଇ ଥାଏ। ୮।

### ଅରଣ୍ୟଠାରେ

ଯେ ଅରଣ୍ୟ ସେ ନାନାଦଣ୍ଡ ଓ କାଷ୍ଠ ସମୂହକୁ ଧାରଣ କରି ସ୍ଥଳ ବିଶେଷରେ ନିର୍ଭୟ ହୋଇଥାଏ। ଶନି ଯେ ହିଂସ୍ର ଜନ୍ତୁମାନଙ୍କ ସଙ୍ଗରେ ରହିବାରୁ ଭୟ ଜାତ କରାଏ। ୯।

### ଗୋପାଳଠାରେ

ଯେ ଗୋପାଳ ସେ ଦଣ୍ଡ ଯେ ଯଷ୍ଟି ଧାରଣ କରି ଗୋରୁ ଶୁଆଇବାକୁ ଧାନ୍ୟ ଫସଲ ଇତ୍ୟାଦିକୁ ଅଦର ବଳାଇ ଏକ ଜାଗାରେ ଶୟନ କରେ। ଶନି ଯେ ପଶୁ ସଙ୍ଗରେ ମଣ୍ଡିଥାଏ। ତାଙ୍କ ଦେହରେ ଭୟ ନ ଥାଏ। ୧୦।

### ଯମଠାରେ

ଯେ ଯମ ସେ ଦଣ୍ଡଧର ନାମରେ ବିଭୂଷିତ ହୋଇ ନିର୍ଭୟ ହୃଦରେ ଅଦର ବଳାଇ ଥାଏ। ଶନି ତାହାର ଭ୍ରାତା ଥିବାରୁ ତାଠାରେ ମଣ୍ଡିଥାଏ, ପାପ ଦଣ୍ଡ ଦେବାକୁ ତାଠାରୁ ବଳ ନତ୍ରା କେ ଅଛି ।୧୧।

### ଶୂଳଧାରୀଠାରେ

ଯେ ଶୂଳଧାରୀ ସେ ଦଣ୍ଡ ଯେ ଶୂଳକୁ ଧାରଣ କରି ନିର୍ଭୟକୁ ଅଦର ବଳାଇ ଥାଏ। ଶନି ଯେ ଖଳ ଲୋକମାନଙ୍କୁ ଦଣ୍ଡ ଦେବାକୁ ନିର୍ଭୟ ମନେ ମଣ୍ଡିଥାଏ। ୧୨।

### ଗୀତ

ସ୍ୱ ଭ୍ରମରେ ଶ୍ଲେଷୀ ହୋଇ ବରେ ରହି ସରବ ହସଇ ମନେ।
ବିଚକ୍ଷ ଏ ଗୀତ ହୋଇଲା ରଚିତ ଉତ୍କଳୀୟ କବି ରତନେ। ୪।

### ଶ୍ଳୋକ

ସ୍ମେରଣେ ମୃଗେଚନ୍ଦ୍ରେ କର୍ପୂରେ କନକେ ହ୍ରିଷୁ।
ମଦନେ ସ୍ୱପଚନ୍ଦ୍ରେ ଚ କୋକିଲେ କମଲେ ଜଲେ।

ରାଜ୍ଞେ ସୁବଦ୍ଧନେ ରାମନନ୍ଦନେ ଶାପୃକେ ଘନେ,
ଦପ୍ରୀଷ୍ଟ ଦାସ ତରଳେ ରାମ ଶବ୍ଦ ପ୍ରକୀର୍ତ୍ତିତାଃ ।
କାନନେ ଯେ ଦ୍ୱେ ମୃଗେନ୍ଦ୍ରେଷ୍ୟୌ ମାରେ ରଦ୍ଧୃତ୍ତମେ ।
ରାଜ୍ଞି ରାଷ୍ଟ୍ରରସୋ ଧୂମକେଶ ଗ୍ଲେ ଯୁଦ୍ଧ ରାମ ଉପ ତେ ।

## ଅର୍ଥ

### ରାମଚନ୍ଦ୍ରଙ୍କଠାରେ

ଯେ ରାମଚନ୍ଦ୍ର ସେ ସୁ ଯେ ଉତ୍ତମ ଆଚରଣରେ ସ୍ନେହ ଦେଇବାରେ କ ଶ୍ରେଷ୍ଠ ପଣରେ ରହି ମନରେ ସମସ୍ତଙ୍କୁ ସମାନ ଜ୍ଞାନ କରନ୍ତି । ୧ ।

### ବନବାସୀଠାରେ

ଯେ ବନବାସୀ ସେ ସୁ ରାମ ଯେ ଉତ୍ତମ ବନରେ ସ୍ନେହ କରୁ ବର କ ପ୍ରଧାନ ବୋଲାଇ ଥାଏ । ବନର ସମସ୍ତ ତତ୍ତ୍ୱ ତା ମନରେ ପ୍ରବେଶ କରୁଥାଏ । ୨ ।

### ରସିକଠାରେ

ଯେ ରସିକ ସେ ସୁ ରାମ ଯେ ଉତ୍ତମ ସ୍ତ୍ରୀଠାରେ ସ୍ନେହ କର ବର କ କାନ୍ତ ପଣରେ ରସିଥାଏ । ସେ ପୁରୁଷର ମନେ ସେ ସ୍ତ୍ରୀ ସବୁବେଳେ ଦେଖାଯାଏ । ୩ ।

### ପବନଠାରେ

ଯେ ପବନ ସେ ସୁ ରାମ ଯେ ଉତ୍ତମ ମୃଗଠାରେ ସ୍ନେହ କରୁ ବର କ ପଲାୟଣେ ଥାଏ । ସେ ମୃଗ ଉପରେ ବସିଲେ ତାକୁ ସବୁ ଦେଖାଯାଏ । ୪ ।

### ସୁରାଠାରେ

ସୁରା ଯେ ମଦ୍ୟ ତାଠାରେ ଯେ ସ୍ନେହ କରେ ସେ ସମୟରେ ମରେ କ ନାଶ ହୁଏ । ଗୋଟାଏ ଅଘଟଣ କଥା ଶୁଣିଲେ ମଦ୍ୟପ କହେ ''ହୋଇବରେ''; ଏପରି ବ୍ରହ୍ମାଣ୍ଡର ସବୁ କଥା ତା ମନକୁ ଆସଇ । ୫ ।

### ରେବତୀଙ୍କଠାରେ

ଯେ ରେବତୀ ସେ ସୁ ରାମ ଯେ ବଳରାମଙ୍କଠାରେ ସ୍ନେହୀ । ବଳରାମ ତାଙ୍କର ବରପଣେ ରହି ରେବତୀଙ୍କ ବିନା ତାଙ୍କ ମନରେ ଅନ୍ୟ ଚିନ୍ତା ନ ଥାଏ । ୬ ।

ଭ୍ରମରଠାରେ

ଯେ ଭ୍ରମର ସେ ସ୍ୱପ୍ନ ଯେ ପଦ୍ମବନରେ ବିଚରଣେ ସ୍ନେହୀ ହୋଇବାରୁ ତା ମନରେ ଅନ୍ୟ ଫୁଲ ସବୁ ଦିଶଇ ନାହିଁ । ୭ ।

କେଳାଠାରେ

ଯେ କେଳା ସେ ସ୍ୱପ୍ନ ଯେ ଭଲ ନାଗ ସର୍ପ ଦେଖିଲେ ବଡ଼ ଯେ ଭଲ ବୋଲି ଜ୍ଞାନ କରି ତାଠାରେ ସ୍ନେହ ରଖିଥାଏ । ନାଗ ସର୍ପ ପାଇଲେ ତା ମନରେ ସବୁ ଦେଖାଯାଏ । ୮ ।

ରଢଠାରେ

ଯେ ରଢ ସେ ସ୍ୱପ୍ନ ଯେ କନ୍ଦର୍ପଠାରେ ସ୍ନେହୀ ହେବାରୁ କନ୍ଦର୍ପ ତା ବଇଯୋଗ୍ୟ ବ୍ରହ୍ମାଣ୍ଡର ସବୁ କଥା ତା ମନରେ ପଡ଼ଇ । ୯ ।

ସିଦ୍ଧାଗ୍ରଠାରେ

ଯେ ସିଦ୍ଧାଗ୍ର ସେ ସ୍ୱପ୍ନ ଯେ ଧାତୁ ସବୁକୁ ସ୍ନେହ ପୂର୍ବକ ଉତ୍ତମ ଚଇଲ କରି ବଡ଼ ବଡ଼ ଉତ୍କୃଷ୍ଟ ଦ୍ରବ୍ୟ ତିଆର କରେ, ଧାତୁ ଚାଇଲ କଲେ ତା ମନରେ ଅନେକ କଥା ଦିଶଇ । ୧୦ ।

ନିର୍ଦ୍ଧନଠାରେ

ଯେ ନିର୍ଦ୍ଧନ ସେ ସ୍ୱପ୍ନ ଯେ ବଡ଼ ଦୁଃଖକୁ ସ୍ନେହ କରି ବଡ଼ ଅତି କୃଷମନଙ୍କ ତଳରେ ସମସ୍ତରେ କାଳ ଯାପନ କଲେ ତା ମନରେ କେତେ କଥା ପଡ଼ଇ । ୧୧ ।

ହର୍ଷଲୋକଠାରେ

ଯେ ହର୍ଷଲୋକ ତା ମୂର୍ଖ ସବୁବେଳେ ସ୍ୱପ୍ନ ଯେ ହାସ ଉଭବ ହେଉଥାଏ । ଏଣୁ ଲୋକମାନଙ୍କ ମଧ୍ୟରେ ବଡ଼ ବଡ଼ ଭଲ ହୋଇ ତା ମନରୁ ସବୁ ଭଲ କଥା ଆସୁଥାଏ । ୧୨ ।

କାରିଗରଠାରେ

ଯେ କାରିଗର ସେ ସ୍ୱପ୍ନ ଯେ ଦନ୍ତ କାର୍ଯ୍ୟରେ ସ୍ନେହ କରିବାରୁ ବଡ଼ ବଡ଼ ପ୍ରଶଂସା ପାଏ । ଦନ୍ତ କାର୍ଯ୍ୟ କଲେ ଅଉ ସବୁ କାର୍ଯ୍ୟ ତା ମନରେ ଦେଖା ଯାଉଥାଏ । ୧୩ ।

### ନଦୀଠାରେ

ଯେ ନଦୀ ସେ ଦୃଶ୍ୟମ ଯେ ଉତ୍ତମ ଜଳରେ ସ୍ନେହୀ ହୋଇଥାଏ ଏଣୁ ବର ଷ ପାର ପଦଙ୍କୁ ପାଏ ନଦୀ ଜଳକୁ ଦୃଷ୍ଟି ଦେଲେ ତଳେ ସବୁ ପଦାର୍ଥ ଦେଖାଯାଏ । ୧୪ ।

### ସୁନାସ୍ତ୍ରୀଠାରେ

ଯେ ସୁନାସ୍ତ୍ରୀ ବଣିକ ସେ ସୁଶ୍ରମ ଷ ଭଲ ସୁନା ପାଇଲେ ସ୍ନେହ ପୂର୍ବକ ବର ଷ ବେଶ ଉଜ୍ଜ୍ୱଳ କରଇ । ସୁନା ଥିଲେ ଅନେକ ଅଳଙ୍କାର ଗଢିବାକୁ ତା ମନରେ ଆସଇ । ୧୫ ।

### କୋକିଳଠାରେ

ଯେ କୋକିଳ ଜାତ ସେ ସୁଶ୍ରମ ଯେ ଉତ୍ତମ ପ୍ରକାରେ ରବ କରିବାରୁ ସର ପର ଚିତ୍ତ ବୋଧହୁଏ । ସେ ସ୍ୱର ବର ଷ ଉତ୍କୃଷ୍ଟ ଅଟେ, ଜଗାଉଚରଣ ଦାସ କବିନ୍ଦ୍ର କହିଲେ ହେ ପଣ୍ଡିତ ପ୍ରବିଣମାନେ ଏ କପର ଗୀତ ବିବେଚନା କରନ୍ତୁ । ୧୬ ।




---

କଟକ ଦତ୍ତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍ ଯନ୍ତ୍ରେ ମୁଦ୍ରିତ । ୧୯୩୪

# ବିଜ୍ଞାପନ

ଅଗ୍ରିମ ୧୦ଟାର ପୁସ୍ତକ ମଗାଇଲେ ଅଧିକ କମିଶନ ଦିଆଯାଏ ।

| | |
|---|---|
| ଭୋଳାବଳ ଚଉତିଶା | ଟ ୦ / |
| ବେଲାବେଳୁଣୀ ସୁଅଙ୍ଗ | ଟ ୦ / |
| ସୁ ନାଅମେଳା | ଟ ୦ / |
| ବନବଲେ ଚଉତିଶା | ଟ ୦ /୦ |
| ଷଣ୍ଢରଭେଦ ଲକ୍ଷଣ ୧ମ | ଟ ୦ /୦ |
| ଏକତ୍ର ୨ୟ | ଟ ୦ /୬ |
| ନଷ୍ଟରେଖା | ଟ ୦ ୧୬ |
| ଦୁର୍ଗାସ୍ତୁତି | ଟ ୦ ୬ |
| ଦୁର୍ଗାଅଷ୍ଟକ | ଟ ୦ / |
| ସର୍ବମଙ୍ଗଳା ସ୍ତୁତି | ଟ ୦ ୧୯ |
| କପଟପାଶା | ଟ ୦ /୬ |
| ଅଙ୍ଗଦପଈଜ | ଟ ୦ ୵ |
| ଲକ୍ଷ୍ମୀପୁରାଣ | ଟ ୦ ୵ |
| ଚଉପଦୀ ଚନ୍ଦ୍ରମାଳା ୧ମ | ଟ ୦ / |
| ୨ୟ | ଟ ୦ ୵ |
| ବୃହତ ଅଭେଦରଞ୍ଜନ | ଟ ୦ । |
| ସୀତାବେଶ ସୁଅଙ୍ଗ | ଟ ୦ ୵ |
| ଶୋଭାବତୀ | ଟ ୦ ୵୬ |
| ବଂଶଦର୍ପଣ | ଟ ୦ ।୵ |
| ନଷ୍ଟକେଶ ସୁଅଙ୍ଗ | ଟ ୦ / |
| ଲକ୍ଷ୍ମୀସ୍ୱଣ ସୁଅଙ୍ଗ | ଟ ୦ ।୵ |
| ଭ୍ରମରବର ପାଲା | ଟ ୦ ୵ |
| ବଜାମାଣିକ | ଟ ୦ ୧୬ |
| ଦୃଢ଼ଅର୍ଗଳା | ଟ ୦ /୦ |
| ଶ୍ରୀ ଲକ୍ଷ୍ମୀ ଚଉପଦୀ | ଟ ୦ ୵୬ |
| ଧ୍ୱଜମଞ୍ଜରୀ | ଟ ୦ / |
| ସାଗରବୋଲୁ ଜଳ ପଦ୍ମଲୋଭ ଭୃଙ୍ଗ | ଟ ୦ ୧୯ |
| ଧାରଜାତି ହରଣ | ଟ ୦ ୵ |
| ମୃତ୍ୟୁଞ୍ଜୟ ସ୍ତୁତି | ଟ ୦ / |
| ବୃହତ୍ ସୂର୍ଯ୍ୟସ୍ତୋତ୍ର | ଟ ୦ ୵ |
| ଗୋପାଳସଭା | ଟ ୦ ୧୯ |
| ଯମସ୍ତୁରଣ | ଟ ୦ । |
| ରାସକ୍ରୀଡ଼ା | [illegible] |
| ଗଜନିସ୍ତାରଣ | ଟ ୦ ୧୬ |
| ବିଲଙ୍କା ରାମାୟଣ | ଟ ୦ ୵ |
| ପ୍ରସ୍ତାବସିନ୍ଧୁ | ଟ ୦ ।୵ |
| ମଥୁରାମଙ୍ଗଳ | ଟ ୦ ।/ |
| ନାମସ୍ମରଣ କୀର୍ତ୍ତନ ୧ମ ୨ୟ | |
| ଖଣ୍ଡ ୪ର୍ଥ ସେ ୧ ଟ | ଟ ୦ ୩ |

ଜଗନ୍ନାଥ କୋମ୍ପାନୀ
ବାଲୁବଜାର, କଟକ ।

ଶ୍ରୀ ଜଗନ୍ନାଥ ମିଶ୍ର
ପ୍ରୋପ୍ରାଇଟର